ISSN: 2456-9194, Vol. III, Issue. I, June 2019

ପ୍ରତ୍ୟୟ

(Journal of Odia Language, Culture and Science)

JournalHomepage:http://cphfs.in/research.php



# ଶ୍ରୀଯୁକ୍ତ ବିପିନ ବିହାରୀ ମିଶ୍ରଙ୍କ ସ୍ତମ୍ଭରେ ବ୍ୟଙ୍ଗାତ୍ମକ ଦୃଷ୍ଟିଭଙ୍ଗୀ : ଏକ ଆକଳନ

**ଲୋଲୁପ ଚନ୍ଦ୍ର ମହାରଣା**

ଗବେଷକ, ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାର, ଭୁବନେଶ୍ୱର

ଇ-ମେଲ୍:lolupmoharana@gmail.com

***ସଂକ୍ଷିପ୍ତ ସାର :*** *ଶ୍ରୀଯୁକ୍ତ ବିପିନ୍ ବିହାରୀ ମିଶ୍ର ଆଧୁନିକ ଓଡ଼ିଆ ସାହିତ୍ୟ ବିଶେଷତଃ ସ୍ତମ୍ଭ ସାହିତ୍ୟ ସୃଷ୍ଟିପରିପ୍ରେକ୍ଷୀରେ ଜଣେ ଅଗ୍ରଗାମୀ ସାଧକ । ତାଙ୍କ ଦ୍ୱାରା ସୃଷ୍ଟିଲାଭ କରିଥିବା ସାହିତ୍ୟ ସାଂପ୍ରତିକ ସମାଜର ବିଶିଷ୍ଟ ସମ୍ବାଦପତ୍ର ଓ ପତ୍ରିକା,  ଯଥା - ଦୈନିକ ସମାଜ, ସମ୍ବାଦ, ଧରିତ୍ରୀ, ପ୍ରମେୟ, ଦୈନିକ ଆଶା ଡଗର, ମାତୃଭୂମି, ଫାଲଗୁ, ଅନ୍ୱେଷା, ଶ୍ରୀଜଗନ୍ନାଥ, ଶାବର-ଶ୍ରୀକ୍ଷେତ୍ର ଆଦି ସମ୍ବାଦ ପତ୍ର ତଥା ପତ୍ରପତ୍ରିକାରେ ପ୍ରକାଶ ପାଇ ଆସୁଅଛି । ସାଂପ୍ରତିକ ସମାଜର ବିଶିଷ୍ଟ ଐତିହାସିକ ସମ୍ବାଦ ପତ୍ର 'ସମାଜ'ରେ ବଳିଷ୍ଠ ଲେଖା ମାନ ପ୍ରକାଶ ପାଉଛି । ଏହାଛଡା ଦୈନିକ ପ୍ରମେୟ ଖବର କାଗଜରେ ମଧ ସେ ସାହିତ୍ୟ ସୃଷ୍ଟିକରି ଚାଲିଛନ୍ତି । ଏତଦ୍ ବ୍ୟତୀତ ତାଙ୍କଦ୍ୱାରା ସୃଷ୍ଟ ସ୍ତମ୍ଭ ରଚନା ଗୁଡିକ କେତେକ ପୁସ୍ତକରେ ସଂକଳିତ ହୋଇ ପାଠକୀୟ ଅଦୃତି ଲାଭ କରିଅଛି । ସେହି ସଂକଳନ ମଧରେ ତୀର୍ଯ୍ୟକଦୃଷ୍ଟି, ମାତୃଗର୍ଭରୁ ଶ୍ମଶାନ ପର୍ଯ୍ୟନ୍ତ, ଜୀବନର ରଫ୍‌କଥା, କଥା-ସରିନାହିଁ, ବିଗତ ସହସ୍ରାବ୍ଦୀ, ଅନ୍ୟତମ । ଏହିସବୁ କୃତି ଗୁଡିକ ମଧରେ ବ୍ୟାଙ୍ଗାତ୍ମକ ଦୃଷ୍ଟିଭଙ୍ଗୀ, ଜୀବନର ଅନୁଭୂତି ସଂପନ୍ନ ସମସ୍ୟା, ସମାଜ ପରିବର୍ତ୍ତନର ସ୍ୱର, ନ୍ୟାୟ ସଂସ୍କୃତି, ଐତିହ୍ୟ ଓ ଜାତୀୟବାଦୀ ଚେତନାର ଏକ ବାସ୍ତବରୂପ ସନ୍ନିବେଶିତ ହୋଇଛି । ପ୍ରତ୍ୟେକ ସୃଷ୍ଟିରେ ରହିଛି ବ୍ୟକ୍ତି ଉନ୍ମୁଖ ଭାବଚେତନା ଓ ବ୍ୟଙ୍ଗ ମାଧମରେ ସମାଜ ସଂସ୍କାର ମନୋଭାବ ।*

*ମୂଳଶବ୍ଦ: ସ୍ତମ୍ଭ ସାହିତ୍ୟ, ବିପିନ ବିହାରୀ ମିଶ୍ର, ହାସ୍ୟରସ, ବ୍ୟଙ୍ଗ, ତୀର୍ଯ୍ୟକଦୃଷ୍ଟି, ମାତୃଗର୍ଭରୁ ଶ୍ମଶାନ ପର୍ଯ୍ୟନ୍ତ*

## 1. ସ୍ତମ୍ଭ ସାହିତ୍ୟରେ ବ୍ୟଙ୍ଗ:

ଓଡ଼ିଆ ସ୍ତମ୍ଭ ସଂପର୍କରେ ଆଲୋଚନା ପୂର୍ବକ  ବିଶିଷ୍ଟ ସାହିତ୍ୟିକ ଡଃ ମୃଣାଳ ଚାଟାର୍ଜୀଙ୍କ ଓଡ଼ିଶାରେ ସାମ୍ବାଦିକତାର  ଇତିହାସରେ କୁହନ୍ତି । "ସ୍ତମ୍ଭକୁ ଇଂରାଜୀରେ ଓପିନିଅନ୍ ଏଡିଟୋରିଆଲ ବା ଅପ-ଏଡ୍ କଲମ ବୋଲି କୁହାଯାଏ । ସାଧାରଣତଃ ଏକ ସଂପାଦକୀୟ ପୃଷ୍ଠାରେ କିମ୍ବା ତାର ପାଖ ପୃଷ୍ଠାରେ ସ୍ତମ୍ଭ ସ୍ଥାନପାଏ । ଏଥିରେ ସମସାମୟିକ  ଘଟଣା ବା ସମାଜର ଚର୍ଚ୍ଚିତ  ଘଟଣା ଉପରେ ଲେଖାଯାଏ । ଜଣେ ରିପୋର୍ଟର ଯେଉଁ ଢ଼ଙ୍ଗରେ ସଂବାଦର ଉତ୍ସ ବିଷୟରେ ବର୍ଣ୍ଣନା କରି ଖବର ଲେଖେ । ଏଥିରେ ସେଇ ଢ଼ାଞ୍ଚା ଦେଖିବାକୁ ମିଳେ । କିନ୍ତୁ ସ୍ତମ୍ଭକାରରେ ବ୍ୟକ୍ତିଗତ ମତ ଏଥିରେ ସ୍ଥାନ ପାଇଥାଏ ।(୧)

ଆଧୁନିକ ଓଡ଼ିଆ ସ୍ତମ୍ଭ ସାହିତ୍ୟକ୍ଷେତ୍ରରେ ଶ୍ରୀଯୁକ୍ତ ବିପିନ ବିହାରୀ ମିଶ୍ର ଜଣେ ଉଚ୍ଚକୋଟୀର ସ୍ତମ୍ଭକାର । ଶ୍ରୀଯୁକ୍ତ ମିଶ୍ରଙ୍କ ସ୍ତମ୍ଭରେ ଭରିରହିଛି ସମାଜର କୋଣ ଅନୁକୋଣର ନିଚ୍ଛକ ଚିତ୍ର । ଜଣେ ସୁସଂପାଦକୀୟ ଓ ସ୍ତମ୍ଭସାହିତ୍ୟିକ ଭାବରେ ବେଶ୍ ପ୍ରଭାବଶାଳୀ ମନେହୁଅନ୍ତି ।  ସମାଜର ବିଭିନ୍ନ ଦୃଷ୍ଟିକୋଣକୁ ବିଚାର କରି ନିଜସ୍ୱ ଜ୍ଞାନ ଓ ଅଭିଜ୍ଞତାକୁ ପାଥେୟକରି ସେ ରଚନା କରିଛନ୍ତି ଅନେକ ସ୍ତମ୍ଭ। ଶ୍ରୀଯୁକ୍ତ ବିପିନ ବିହାରୀ ମିଶ୍ରଙ୍କ ସ୍ତମ୍ଭରେ ଭରିରହିଛି ସମାଜସଂସ୍କାର ମନୋବୃତ୍ତି । ସମାଜର ଅନେକ ଜଟିଳତା ଓ ସମସ୍ୟାକୁ ବ୍ୟଙ୍ଗାତ୍ମକ ଢ଼ଙ୍ଗରେ ପରିବେଶଣ କରିବାକୁ ଶତଚେଷ୍ଟା କରିଛନ୍ତି । ଜଣେ  ଉଚ୍ଚକୋଟୀର ବ୍ୟଙ୍ଗାତ୍ମକ ସ୍ତମ୍ଭକାର ଭାବରେ ଅନେକ ପାଠକୀୟ ଆଦୃତି ଲାଭ କରନ୍ତି । ସ୍ତମ୍ଭ ସାହିତ୍ୟରେ ବ୍ୟଙ୍ଗାତ୍ମକ ଦୃଷ୍ଟିକୋଣ ବିଚାର ଆଲୋଚନା କରିବାକୁ ଯାଇ ଶ୍ରୀଯୁକ୍ତ ମିଶ୍ର ଅନେକ ଉପାଦେୟ ବିଷୟବସ୍ତୁ ଚୟନ ପୂର୍ବକ ସ୍ତମ୍ଭ ରଚନା କରିଛନ୍ତି ।

ଯେଉଁ ସାହିତ୍ୟରେ ବ୍ୟକ୍ତି ଓ ସମାଜକୁ ବ୍ୟଙ୍ଗକରି ସମାଜ ସଂସ୍କାର କରିବା ନିମନ୍ତେ ପ୍ରୟାସ କରାଯାଇଥାଏ, ତାହା ହେଉଛି ବ୍ୟଙ୍ଗ ସାହିତ୍ୟ । ବ୍ୟଙ୍ଗର ଇଂରାଜୀ ପାରିଭାଷିକ ଶବ୍ଦ ହେଉଛି 'Satire' ଅଭିଧାନରେ ଏହି 'Satire'ର ଅର୍ଥ ବ୍ୟଙ୍ଗୋକ୍ତି ବା ବିଦ୍ରୂପ। ଏ ସଂପର୍କରେ Encyclopedia ରେ ଉଲ୍ଲେଖ ଅଛି - "A composition in which vice or folly is

denounced or ridiculed” ଅର୍ଥାତ୍ ଯେଉଁ ରଚନାରେ ଦୋଷ ବା ତ୍ରୁଟିକୁ ନିନ୍ଦା ବା ବିଦ୍ରୁପ କରାଯାଇଥାଏ, ତାହାକୁ ବ୍ୟଙ୍ଗ କୁହାଯାଏ । ହାସ୍ୟରସର ଅନ୍ୟାନ୍ୟ ବିଭାଗ ଅପେକ୍ଷା ଏହା ଏକ ନିକୃଷ୍ଟ ବିଭାଗ ବୋଲି କୁହାଯାଏ । ସମାଜକୁ ସଂସ୍କାରିତ କରିବାରେ ଅର୍ଥାତ୍ ଏକ ଶୋଷଣ ମୁକ୍ତ ଓ ଦୋଷମୁକ୍ତ ସମାଜ ଗଠନରେ ବ୍ୟଙ୍ଗକାରଙ୍କ ଭୂମିକା ଗୁରୁତ୍ୱପୂର୍ଣ୍ଣ । ବ୍ୟଙ୍ଗକାର ସଙ୍କୋଚ, ତତ୍ପର, ଆଦର୍ଶବାଦୀ ଓ ନ୍ୟାୟବାନ୍ ବ୍ୟକ୍ତି ହୋଇଥିଲେ ସେ ଉନ୍ନତ ବ୍ୟଙ୍ଗ ସୃଷ୍ଟି କରିବାକୁ ସମର୍ଥ ହୁଏ । ବ୍ୟଙ୍ଗକୁ ଯୁକ୍ତିଯୁକ୍ତ ଉପାୟରେ ଉପସ୍ଥାପନ କରିପାରିଲେ ତାର ମହତ୍ତ୍ୱ ବଢ଼ିଥାଏ ଏବଂ ତା’ ସହିତ ପାଠକ ଏବଂ ଶ୍ରୋତାକୁ ମୁଗ୍ଧ କରିବା ସହିତ ସାହିତ୍ୟ କଳାକୁ ସୌରଭ ମଣ୍ଡିତ କରିଥାଏ । ବ୍ୟଙ୍ଗ ପାଇ ବ୍ୟଙ୍ଗ ଉଦ୍ଦିଷ୍ଟ ହେଲେ ତାହା କଳାତ୍ମକ ମର୍ଯ୍ୟାଦା ଲାଭ କରିପାରେ ନାହିଁ। ନିର୍ମଳ ହାସ୍ୟରସ ସ୍ଥୂଳ ହେଲେ ବ୍ୟଙ୍ଗ ସୂକ୍ଷ୍ମ । ଉଭୟେ ସମ ପର୍ଯ୍ୟାୟବାଚୀ, କିନ୍ତୁ ହାସ୍ୟରସ ବ୍ୟଙ୍ଗର ବାହକ ସଦୃଶ ।

ସାଧାରଣ ଜନତା ହାସ୍ୟରସକୁ ଜୀବନର ଆନନ୍ଦ ଓ ଉପଭୋଗର ସାମଗ୍ରୀରୂପେ ଗ୍ରହଣ କରୁଥିବାବେଳେ ସାହିତ୍ୟିକମାଙ୍କର ସୃଷ୍ଟିଟିକୁ ପାଠକ ସେହିଭଳି ବିଚାର କରେ ନାହିଁ ସେଥିପାଇଁ ନାନା ବିଚାର, ଆଲୋଚନା ପର୍ଯ୍ୟାଲୋଚନ ଓ ବିଶ୍ଳେଷଣ କରାଯାଇଛି । ବ୍ୟଙ୍ଗ ବିଦ୍ରୁପ ମାଧ୍ୟମରେ ସୌନ୍ଦର୍ଯ୍ୟାନୁଭୂତିରେ ଏହାର ପରିପ୍ରକାଶ ଘଟିଥାଏ । ସ୍ରଷ୍ଟାର ସ୍ନେହ ଓ ସମ୍ବେଦନରେ ସୃଷ୍ଟିହୁଏ କାଳଜୟୀ । ଚରିତ୍ର ଗୁଡିକପ୍ରତି ସ୍ରଷ୍ଟା ଯଦି କାବ୍ୟିକ ନ୍ୟାୟ (Poetic Justices) ପ୍ରଦାନ କରିପାରିଲେ ତେବେ ତାର ସୃଷ୍ଟି ହୋଇଉଠେ ସଫଳ ଓ ସାର୍ଥକ ।

ଓଡ଼ିଆ ସାହିତ୍ୟରେ ରାଧାନାଥ ରାୟ ପ୍ରଥମ କରି ଦରବାର’ ନାମକ ଏକ ବ୍ୟଙ୍ଗାତ୍ମକ କାବ୍ୟ ରଚନା କଲେ । ଏହି କାବ୍ୟରେ ଇଂରେଜ ଶାସନ ବ୍ୟବସ୍ଥାର ସାମାଜିକ ତ୍ରୁଟି ଏବଂ ଉପାଧିବ୍ୟାଧିର ବ୍ୟକ୍ତିମାନଙ୍କୁ ବ୍ୟଙ୍ଗ ଓ ବିଦ୍ରୁପ ମାଧ୍ୟମରେ ସମାଲୋଚନା କରିଛନ୍ତି କବି । ୧୮୯୪ ମସିହାରେ କଟକର ବାରବାଟୀ ଦୁର୍ଗ ପ୍ରାଙ୍ଗଣରେ ଏକ ଦରବାରର ଆୟୋଜନ କରାଯାଇଥିଲା । ଏହି ଦରବାରରେ କାଉପୁର ଜମିଦାର ଗୋବିନ୍ଦ ବଲ୍ଲଭ ରାୟ ଏବଂ ସାମନ୍ତ ଚନ୍ଦ୍ରଶେଖରଙ୍କୁ ଉପାଧି ପ୍ରଦାନ କରିବାର ଥିଲା, ମାତ୍ର ସାମନ୍ତ ଚନ୍ଦ୍ରଶେଖର ଅନୁପସ୍ଥିତ ରହିଲେ । ତେଣୁ ଏହାର ମାସକ ପରେ ଆଉ ଗୋଟିଏ ଛୋଟ ସଭାର ଆୟୋଜନ କରାଯାଇ ତାଙ୍କୁ ଉପାଧି ପ୍ରଦାନ କରାଗଲା। ପ୍ରଥମ ଦରବାରରେ ରାଜାମାନଙ୍କର ବେଶଭୂଷା ଏବଂ ଆଟୋପକୁ କବି ରାଧାନାଥ ରାୟ ବ୍ୟଙ୍ଗ କରିଛନ୍ତି । କିଏ ହାତୀ ଉପରେ ବସି ଆସିଛି ତ ଆଉ କିଏ ଘୋଡା ଉପରେ । ସେମାନେ ଏପରି ଚାଟୁକ୍ତି ପ୍ରଦାନ କରୁଥାନ୍ତି ଯେ ଯେପରି ସେମାନେ ଆଜି ଏହି ଦରବାରରେ ସମ୍ମାନିତ ହେଉଛନ୍ତି । ସମସ୍ତେ ନିଜର ବଡିମା ଦେଖାଇବାରେ ଲାଗିପଡିଛନ୍ତି । କବିଙ୍କ ଲେଖନୀରେ - “ଆନ ବୋଲେ ମୁହିଁ ଅଟଇ ପୁଲିସ/ ବିନା ମେଘେ ସୃଜି ପାଇଲ କୁଳିଶ ।”(୨) (ଦରବାର) । କେବଳ ରାଧାନାଥଙ୍କ ସାହିତ୍ୟରେ ନୁହେଁ; ଫକୀରମୋନଙ୍କ ସାହିତ୍ୟରେ ମଧ ଏହାର ଚିତ୍ର ଦେଖିବାକୁ ମିଳେ । ଫକୀର ମୋହନ ଚମ୍ପାର ରୂପ ବର୍ଣ୍ଣନା ସମୟରେ ବ୍ୟଙ୍ଗର ପ୍ରୟୋଗ ଏହିପରି କରିଛନ୍ତି - “କଜ୍ଜଳ ପୂରିତ ଲୋଚନ ଭାଲେ/ ଗୁଣ୍ଡିମିଶା ଖିଲ୍ଲୀ ଗୁଞ୍ଜିତ ଗାଲେ ।”(ଛ’ମାଣ ଆଠଗୁଣ୍ଠ) ।

ଏହାଙ୍କ ବ୍ୟତୀତ ଯଦୁମଣି, ବଳଦେବ, ମଧୁସୂଦନ, ଲକ୍ଷ୍ମୀକାନ୍ତ ଏବଂ ଗୋଦାବରୀଶଙ୍କ ସାହିତ୍ୟରେ ମଧ ଏହି ଚେତନାକୁ ଆମେ ଦେଖିବାକୁ ପାଇଥାଉ । କିନ୍ତୁ ଏହି ଧାରା ଆଜି ସାହିତ୍ୟରେ ପରାହତ ଓ ଅନାଦରଣୀୟ । ସେମାନଙ୍କ ପ୍ରତିଭାକୁ ଅସମ୍ଭବ କରିବାର କୌଶସି ଆସ୍ପର୍ଦ୍ଧା ଏଠାରେ କରାଯାଉ ନାହିଁ । ବିନମ୍ରର ସହ ସ୍ୱୀକାର କରିବାକୁ ପଡୁଛି ଯେ ସେଗୁଡିକ ଆଉ ଯୁଗୀୟ ଆବେଦନ ବହନ କରିବାକୁ ସମର୍ଥ ନୁହନ୍ତି । ସାଂପ୍ରତିକର ସ୍ରଷ୍ଟାମାନେ ଯୁଗାନୁସାରୀ । ସୃଷ୍ଟିରେ ସମାଜ ଅପେକ୍ଷା ବ୍ୟକ୍ତିର ସ୍ଥାନ ଅଧିକ ଗୁରୁତ୍ୱପୂର୍ଣ୍ଣ । ବ୍ୟକ୍ତିର ବିକଳ ବିଧୃତ ଅବସ୍ଥାକୁ ସ୍ରଷ୍ଟା ନିରୀକ୍ଷଣ କରୁଛି । ଏଥିରେ ଘୃଣା, ଅସୂୟାଭାବ କିମ୍ବା ତାସଲ୍ୟ ନାହିଁ ବରଂ ଚରିତ୍ରମାନଙ୍କ ପ୍ରତି ଗଭୀର ଭଲପାଇବା, ଶ୍ରଦ୍ଧା ଏବଂ ସମ୍ବେଦନାରୁ ଏହାର ସୃଷ୍ଟି ।

ସ୍ୱାଧୀନତା ପରବର୍ତ୍ତୀ କାଳରେ ସ୍ରଷ୍ଟାମାନଙ୍କର ସୃଷ୍ଟିରେ ଅଳ୍ପବହୁତେ ବ୍ୟଙ୍ଗ ବିଦ୍ରୁପ ସ୍ଥାନ ପାଉଥିଲେ ହେଁ ଏଗୁଡିକ ସୃଷ୍ଟିର ଏକମାତ୍ର ପ୍ରାଧାନ୍ୟ ଆଭିମୁଖ୍ୟ ନୁହେଁ । ଅବଶ୍ୟ ସାମାଜିକ ଦୋଷ ତ୍ରୁଟିକୁ ସଂଶୋଧନ କରିବାପାଇଁ ସୁରେନ୍ଦ୍ର ମହାନ୍ତି, ଗୋପୀନାଥ ମହାନ୍ତି, ସଚ୍ଚିଦାନନ୍ଦ ରାଉତରାୟ ଏବଂ ନିତ୍ୟାନନ୍ଦ ମହାପାତ୍ର ଯଥାସାଧ୍ୟ ଉଦ୍ୟମ କରିଛନ୍ତି । କିନ୍ତୁ ହାସ୍ୟ ଓ ବ୍ୟଙ୍ଗକୁ ଏକମାତ୍ର ମାଧ୍ୟମ ରୂପେ ଗ୍ରହଣ କରି ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିବା ଦିଗରେ ଫତୁରାନନ୍ଦଙ୍କ ଅବଦାନ ଅତୁଳନୀୟ । ସମକାଳର ଅନ୍ୟ ସାହିତ୍ୟିକମାନଙ୍କ ମଧ୍ୟରେ ଚୌଧୁରୀ ହେମକାନ୍ତ ମିଶ୍ର, କୁଳମଣି ମହାପାତ୍ର, ମହାପାତ୍ର ନୀଳମଣି ସାହୁ, ବସନ୍ତ କୁମାର ଶତପଥୀ ପ୍ରଭୃତିଙ୍କ ନାମ ଉଲ୍ଲେଖ ଯୋଗ୍ୟ । ଏମାନଙ୍କ ବ୍ୟତୀତ ମନୋଜ ଦାସ, ବାମାଚରଣ ମିତ୍ର ଏବଂ କିଶୋରୀ ଚରଣ ଦାସଙ୍କ କେତେକ ସୃଷ୍ଟିରେ ହାସ୍ୟ ଓ ବ୍ୟଙ୍ଗର ପ୍ରମୁଖ ଧାରାଟି ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଲାଭ କରିନଥିଲେ ହେଁ ଆଦୌ ଅବହେଳିତ ଓ ଆପାଂକ୍ତେୟ ନୁହେଁ ।

ଅବଶ୍ୟ ସବୁ ଧରଣର ମନସ୍ତତ୍ତ୍ୱପାଇଁ ବ୍ୟଙ୍ଗ ବିଦ୍ରୁପ ଉପାଦାନ ରୂପେ ଉପଯୋଗ ହୋଇପାରେ ନାହିଁ । ଶିଶୁ କିଶୋର/ କିଶୋରୀ ମନସ୍ତତ୍ତ୍ୱ ଅପେକ୍ଷା ବୟସ୍କ କିମ୍ବା ପରିଣତ ବୟସର ବିଶେଷକରି ଆଧୁନିକ ଶିକ୍ଷିତ ଏବଂ ଚାକିରୀଜୀବ ଚରିତ୍ରମାନଙ୍କ ମନସ୍ତତ୍ତ୍ୱ ବିଶ୍ଳେଷଣରେ ବ୍ୟଙ୍ଗ ବିଦ୍ରୁପର ପ୍ରୟୋଗ ଅଧିକ ସୁଲଭ ହୋଇଥାଏ । ଏଗୁଡିକ ପରିବେଶ ବର୍ଣ୍ଣନାରେ ଚରିତ୍ରମାନଙ୍କ ଆଚରଣରେ ମାନସିକ ସନ୍ତୁଳନ ତଥା ବହୁ ଭାବାବେଗରେ ରୂପାୟନରେ ପରିଲକ୍ଷିତ ହୁଏ । ବୟସ୍କ ଚରିତ୍ରମାନଙ୍କ ଉପର ଓ ଭିତର ଆଚରଣରେ ଅସ୍ୱାଭାବିକତା ଅସାମଞ୍ଜସ୍ୟ ପରିଲକ୍ଷିତ ହେବା ଅପରିହାର୍ଯ୍ୟ ଓ ହାସ୍ୟରସର ଉତ୍ତାଳ ତରଙ୍ଗ ମଧ୍ୟରେ ବ୍ୟକ୍ତିର ବିବର୍ତ୍ତନ ହିଁ ସାମୂହିକ ବିବର୍ତ୍ତନ ଯାତ ସଂସ୍କାର ଓ ଶୋଧନର ଧାରା ବଢ଼ିଚାଲିଛି । ଶବ୍ଦ ସଂଯୋଜନା, ବାକ୍ୟଗଠନ, ସଂଳାପ ପ୍ରୟୋଗ, ଉପମା, ପ୍ରତୀକର ସମାବେଶ, ଚରିତ୍ରମାନଙ୍କର ନାମକରଣ ଏବଂ ସର୍ବୋପରି ବର୍ଣ୍ଣନାରେ ହାସ୍ୟ/ବ୍ୟଙ୍ଗ ପ୍ରୟୋଗର ଉଦାହରଣ ଦର୍ଶାଯାଇପାରେ । ଏହା କେବଳ ପାଠକର ମନୋରଂଜନ କରେ ନାହିଁ କିମ୍ବା ଚରିତ୍ରମାନଙ୍କୁ ସଂଶୋଧିତ କରେନାହିଁ ଅଧିକନ୍ତୁ ପାଠକ ପ୍ରାଣରେ ରସ ସଂଚରଣ ପାଇଁ ବେଶ୍ ଏକ

ଗୁରୁତ୍ୱପୂର୍ଣ୍ଣ ଭୂମିକା ବହନ କରିବାରେ ସହାୟକ ହୋଇଥାଏ । ବ୍ୟକ୍ତିଗତ ବିବର୍ତ୍ତନ ସହିତ ସାମାଜିକ ସଚତନତା ସୃଷ୍ଟି କରିବାରେ ହାସ୍ୟବ୍ୟଙ୍ଗର ଗୁରୁତ୍ୱ ସ୍ୱୀକାର୍ଯ୍ୟ । ପ୍ରଚଣ୍ଡ ମାନବିକ ସମ୍ବେଦନା ସାଙ୍ଗକୁ ଜୀବନର ଗଭୀରତର ଅର୍ଥ ଅନ୍ୱେଷାରେ ଏଗୁଡିକ ଯେତିକି ଲୋକପ୍ରିୟ ସେତିକି ବୌଦ୍ଧିକ ମଧ୍ୟ। ଜଟିଳତମ ଆବେଗଗୁଡିକ ସରଳ ପରିବେଷଣ ଭଙ୍ଗୀଦ୍ୱାରା ସମୃଦ୍ଧ ଓ ଅର୍ଥପୂର୍ଣ୍ଣ ହୋଇ ଉଠିଛି।

ଓଡିଆ ସ୍ତମ୍ଭ ସାହିତ୍ୟରେ ଶ୍ରୀଯୁକ୍ତ ବିପିନ ବିହାରୀ ମିଶ୍ରଙ୍କ ବ୍ୟଙ୍ଗାତ୍ମକ ଦୃଷ୍ଟିଭଙ୍ଗିର ସ୍ୱତନ୍ତ୍ରତା ବାରି ହୋଇପଡେ । ସ୍ତମ୍ଭକାର ଶ୍ରୀଯୁକ୍ତ ମିଶ୍ର ନିଜର ରୁଚି, ଜ୍ଞାନ ଓ ଅଭିଜ୍ଞତାର ଆଶ୍ରୟକରି ବ୍ୟଙ୍ଗାତ୍ମକ ଶୈଳୀରେ ସ୍ତମ୍ଭକୁ ନୂତନତ୍ୱ ପ୍ରଦାନ କରିଛନ୍ତି । ଏହି ବ୍ୟଙ୍ଗାତ୍ମକ ଶୈଳୀ ଜଣେ ସ୍ତମ୍ଭକାର ପାଇଁ ସମାଜ ସୁଧାରିବା ପାଇଁ ମୁଖ୍ୟ ଆଧାର ସ୍ୱରୂପ ପ୍ରକାଶ କରେ । ଅଭିଜ୍ଞତା ଓ ବୌଦ୍ଧିକ ଜ୍ଞାନଭଣ୍ଡାର ବିପୁଳ ପ୍ରୟୋଗ ହିଁ ବ୍ୟଙ୍ଗାତ୍ମକ ଶୈଳୀରେ ମୁଖ୍ୟ ଆଧାର । ସାଂପ୍ରତିକ ସାହିତ୍ୟର ସ୍ତମ୍ଭ ରଚନା କରିବା ଅର୍ଥ ତୀକ୍ଷ୍ଣ ଅସି ଧାରରେ ପଥ ଚାଲିବା ସହିତ ସମାନ । ସ୍ତମ୍ଭକାରଙ୍କୁ ନିଜର ଆତ୍ମବିଶ୍ୱାସ ଓ ସାଲିସ ବିହିନ ଚରିତ୍ର ତାଙ୍କୁ ବ୍ୟଙ୍ଗାତ୍ମକ ସ୍ତମ୍ଭ ରଚନା ପାଇଁ ବଳିଷ୍ଠ ପ୍ରେରଣା ଦିଏ । ଏ ସଂପର୍କରେ ଶ୍ରୀଯୁକ୍ତ ମିଶ୍ରଙ୍କ ବ୍ୟଙ୍ଗାତ୍ମକ ସଂକଳନ ତୀର୍ଯ୍ୟକ ଦୃଷ୍ଟି ମୁଖବନ୍ଧରେ ଏକ ସରଳ କାହାଣୀ ଶୀର୍ଷକରେ ବିଶିଷ୍ଟ ଐତିହାସିକ ଡଃ କୁଂଜ ବିହାରୀ ଦାସଙ୍କ ମତରେ "ତୀର୍ଯ୍ୟକ ଦୃଷ୍ଟିରେ ଅଧିକାଂଶ ରଚନା ପୁଲିସ ବିଭାଗର ବହୁ ଅଜ୍ଞାତ ବିଷୟ ଓ ଅନୁଭୂତିର ସତ୍ୟ ଓଡ଼ିଆ ସାହିତ୍ୟକୁ ଆମଦାନି ହୋଇ ଆସିଅଛି ଓ ରସାଳ ରୂପେ ପ୍ରକାଶ ପାଇଛି । ପ୍ରବନ୍ଧ ବୋଲି ଶଙ୍କି ଯିବାର ନାହିଁ । ତୀର୍ଯ୍ୟକ ଦୃଷ୍ଟି ଆମୂଳଚୂଳ ସୁଖପାଠ୍ୟ, ଲେଖକ ଶ୍ରୀଯୁକ୍ତ ମିଶ୍ରଙ୍କ ସାହିତ୍ୟିକ ଭବିଷ୍ୟତ ଉଜ୍ଜଳତମ ସଂଭାବନା ଏହାର ପ୍ରତ୍ୟେକ ପୃଷ୍ଠା ବହନ କରେ । ଶ୍ରୀମାନ ବିପିନ ବାବୁ ଏ ଜାତୀୟ ବହୁପୁସ୍ତକ ରଚନା କରି ଓଡ଼ିଆ ସାହିତ୍ୟର ଶ୍ରୀବୃଦ୍ଧି ସାଧନ କରନ୍ତୁ ଈଶ୍ୱରଙ୍କ ନିକଟରେ ମୋର ପ୍ରାର୍ଥନା ।"(୩)

ପୁନର୍ବାର ବିଶିଷ୍ଟ ସାହିତ୍ୟିକ ତଥା ଗାଳ୍ପିକ ପ୍ରଫେସର ରାଜକିଶୋର ରାୟ (ତିର୍ଯ୍ୟକସୃଷ୍ଟି, ସଂକଳନସ୍ଥ ନିଜସ୍ୱ ମନ୍ତବ୍ୟରେ କୁହନ୍ତି "ତୀର୍ଯ୍ୟକଦୃଷ୍ଟି" ସଂକଳନସ୍ଥ ନିଜସ୍ୱ ମନ୍ତବ୍ୟରେ କୁହନ୍ତି 'ତୀର୍ଯ୍ୟକଦୃଷ୍ଟି' ସଂକଳନ ଏପରି ଏକ ବ୍ୟଙ୍ଗାତ୍ମକ ସହଜ, ସରଳ ଓ ସ୍ୱ-ଅନୁଭୂତି ସଂକଳନ ଯାହା ମନକୁ ସ୍ପର୍ଶକରେ ଓ ଆଧୁନିକ ସମାଜକୁ ଚେତାବନୀ ଶୁଣାଏ । ତାହେଲେ କେତେ ଯେ ମୋତେ ଆନନ୍ଦ ହେଉଛି ତାହା ମର୍ମେ ମର୍ମେ ଅନୁଭବ କରୁଛି ।(୪)

ଶ୍ରୀଯୁକ୍ତ ମିଶ୍ରଙ୍କର ସାହିତ୍ୟକୁ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ହାସ୍ୟରସ, କରୁଣ କାହାଣୀ, ବ୍ୟଙ୍ଗ ବିଦ୍ରୁପ, ସମାଲୋଚନା, ସମାଜ ସଚେତନତା, ସମାଜ ସଂସ୍କାର ମନୋଭାବ କରିଛି ମହିମାମଣ୍ଡିତ । ସେ ଦୃଢ଼ କଣ୍ଠରେ ସତ୍ୟର ଉଦ୍ଘୋଷଣା କାରିଛନ୍ତି । କାହାରି ନାଲି ଆଖିକୁ ସେ ଡରି ନାହାନ୍ତି କିମ୍ବା କାହାରିକୁ କୌଣସି କାମ ପାଇଁ ତୋଷାମଦି କରିନାହାନ୍ତି ବରଂ ସମାଜର ଉପେକ୍ଷିତ ମଣିଷ ମାନଙ୍କ ପ୍ରତି ସେ ସମବେଦନା ଦେଖାଇଛନ୍ତି। ପରର ଦୁଃଖରେ ସେ ସମଦୁଃଖୀ ହୋଇଛନ୍ତି, କିନ୍ତୁ ଭାଙ୍ଗିପଡି ନାହାନ୍ତି ବରଂ ଦୃଢ଼ତାର ସହିତ ସମସ୍ୟାର ସାମ୍ନା କରି ତାର ସମାଧାନର ଉପାୟ ବାହାର କରିଛନ୍ତି । ଅନ୍ୟର ଆନନ୍ଦରେ ସେ ଖୁସି ହୋଇଛନ୍ତି ସତ ମାତ୍ର ଭାବ ବିହ୍ୱଳିତ ହୋଇ ନାହାନ୍ତି । ତେଣୁ ଶ୍ରୀଯୁକ୍ତ ମିଶ୍ରଙ୍କ ସାହିତ୍ୟ ଯେତିକି ସୁଖପାଠ୍ୟ ସେତିକି ସମାଜ ସଚେତନ । ସମାଜର କଳୁଷିତ ରାଜନୀତି, ଅବିଚାର, ଅନ୍ୟାୟ, ଶୋଷଣ, ଟାଉଟର ଏବଂ ଧୋବଧୋବଳିଆଙ୍କ କୁକର୍ମକୁ ବ୍ୟଙ୍ଗ ବିଦ୍ରୁପ କରିବାକୁ ସେ ପଶ୍ଚାତ୍ପଦ ହୋଇନାହାନ୍ତି । ଏହି ବ୍ୟଙ୍ଗ ବିଦ୍ରୁପ ମାଧ୍ୟମରେ ସମାଜକୁ ପରିବର୍ତ୍ତନ କରିବା ପାଇଁ ସେ ପ୍ରୟାସ କରିଛନ୍ତି । ଶ୍ରୀଯୁକ୍ତ ମିଶ୍ରଙ୍କ ବିଦ୍ରୁପ କରିବାର ଢ଼ଙ୍ଗ ଅତ୍ୟନ୍ତ ତୀକ୍ଷ୍ଣ । କରୁଣ କାହାଣୀ ସାହିତ୍ୟକୁ କରୁଣାନ୍ତକ କରିଦିଏ, ତେଣୁ ସାହିତ୍ୟିକ ନିଜର ସୂକ୍ଷ୍ମ ଲେଖନୀରେ ତାଙ୍କ ସାହିତ୍ୟରେ ହାସ୍ୟରସ ଭରି ତାହାକୁ ମଧୁର ରୁଚିପୂର୍ଣ୍ଣ କରିଛନ୍ତି । ଯଥାର୍ଥରେ ଶ୍ରୀଯୁକ୍ତ ମିଶ୍ର ବୌଦ୍ଧିକତାର ପରିଚୟ ଦେଇ ସାହିତ୍ୟକୁ ଗୂଢ଼ତତ୍ତ୍ୱ ସମ୍ବଳିତ ଓ ଭାବଧର୍ମୀ କରି ଗଢ଼ି ତୋଳିଛନ୍ତି ବୋଲି କହିଲେ ସତ୍ୟର ଅପଳାପ ହେବ ନାହିଁ ।

## 2. ବିପିନ ବିହାରୀଙ୍କ ସ୍ତମ୍ଭ ସାହିତ୍ୟରେ ବ୍ୟଙ୍ଗାତ୍ମକ ଦୃଷ୍ଟିଭଙ୍ଗୀ

'କିସ ହେଲା ଦାସ' ଲେଖା ବ୍ୟଙ୍ଗାତ୍ମକ ଦୃଷ୍ଟିଭଙ୍ଗୀକୁ ନେଇ ରଚିତ ହୋଇଛି । ଏଥିରେ ବାବାଙ୍କ ବିଷୟରେ ଉତ୍ଥାପନ ସହିତ ଭକ୍ତଙ୍କ ବିଷୟରେ ମଧ କୁହାଯାଇଛି । ମଣିଷ ଭଜନ କରେ, ଭଗବାନଙ୍କୁ ଭକ୍ତି କରେ ବୋଲି ସମସ୍ତଙ୍କୁ ପ୍ରଦର୍ଶନ କରିହୁଏ କିନ୍ତୁ ପ୍ରକୃତରେ ତା' ମନ ଆଉ କୁଆଡେ ଥାଏ । ଲୋଭ ଗ୍ରସ୍ତ ମଣିଷ ସବୁବେଳେ ସଂସାର କଥା ହିଁ ଭାବୁଥାଏ । ଏ ସଂସାରର ଧନୀ ମଣିଷ ମାନଙ୍କ ପ୍ରତି ଆକ୍ଷେପ କରି ସ୍ତମ୍ଭରେ କହିଛନ୍ତି - "ଅଧିକାଂଶ ବାବା ହେଲା ପରେ ଧନୀ ହୋଇଯାଆନ୍ତି । ପଇସା ଆସେ ଭକ୍ତମାନଙ୍କ ଠାରୁ । ଯେଉଁମାନଙ୍କ ଲକ୍ଷ୍ୟ ଆଧାତ୍ମିକ ଚେତନା ନୁହେଁ, ବରଂ ସମ୍ପତ୍ତି ପ୍ରତିପତ୍ତି ବୃଦ୍ଧି କିମ୍ବା ପଦବୀ ପ୍ରାପ୍ତି । ଯେଉଁମାନେ ମୋଟାଅଙ୍କର ଦକ୍ଷିଣା ଦିଅନ୍ତି, ତାହା ନୋଟ୍ ଆକାରରେ ,ଚେକ୍ ମାଧ୍ୟମରେ ନୁହେଁ । କଳାଧନ ଦକ୍ଷିଣା ଦେଇ ବାବାଙ୍କ ଅଶୀର୍ବାଦ ପାଆନ୍ତି ।(୫) ବାସ୍ତବରେ ଯୁକ୍ତି ଗ୍ରହଣ ଯୋଗ୍ୟ । କାରଣ ଏପରି ଅନେକ ଲୋକ ଅଛନ୍ତି ଯେଉଁମାନେ କେବଳ ବାହାକରୁ ଦେଖେଇ ହେବା ପାଇଁ ମନ୍ଦିରକୁ ଯାଆନ୍ତି, ପ୍ରକୃତରେ ଈଶ୍ୱରଙ୍କ ପ୍ରତି ସେମାନଙ୍କର ବିଶ୍ୱାସ କିମ୍ବା ଭକ୍ତି ନଥାଏ । ବାବାଙ୍କ ନିକଟକୁ ଯାଇ ରାତିରେ ଅର୍ଜିତ କଳାଧନର କିଛି ଅଂଶ ଦେଇ ଆଶୀର୍ବାଦ ପାଇବାର ଲାଳସା ରଖିଥାନ୍ତି । କେବଳ ଭକ୍ତଗଣକୁ କାହିଁକି ସ୍ତମ୍ଭତା ବାବାମାନଙ୍କୁ ମଧ ବ୍ୟଙ୍ଗ କରିବାକୁ ପଶ୍ଚାତ୍ପଦ ହୋଇନାହାନ୍ତି । ସେ ଉଲ୍ଲେଖ କରିଛନ୍ତି ଯେ - "ସିଲ୍କ କୁର୍ତ୍ତା, ଧୋତି, ମୂଲ୍ୟବାନ୍ ଚପଲ, ମୂଲ୍ୟବାନ୍ ପଥର ଖଞ୍ଜା ପଗଡି, ଦାମିକା କାର୍, ପଞ୍ଚତାରକା ହୋଟେଲ୍ ରୁମ୍ ପରି ବଖରାରେ ବାସ ସୂଚାଇଦିଏ, ଏମାନେ ଭୋଗୀ ନା ତ୍ୟାଗୀ ।"(୬)

"କେତେକ ବାବା ଅଲୌକିକ ଶକ୍ତି ପ୍ରୟୋଗ କରନ୍ତି ବୋଲି ସେମାନଙ୍କର ଭକ୍ତମାନେ ଦାବି କରନ୍ତି । ଛୁଇଁଦେଇ ରୋଗ ଭଲ କରିଦେବା, ଆଶୀର୍ବାଦ କରି ବିପଦମୁକ୍ତ କରିବା ଇତ୍ୟାଦି ଉଦାହରଣ ଦିଆଯାଏ । କେହି ପ୍ରଶ୍ନ କରନ୍ତି ନାହିଁ ଯେ ଏମାନେ ନିଜେ ବେମାର ପଡିଲେ ଡାକ୍ତରଙ୍କୁ କାହିଁକି ଡାକନ୍ତି? ଦ୍ୱିତୀୟରେ କାଶ୍ମୀର ଓ ଅନ୍ୟାନ୍ୟ ଅଞ୍ଚଳରେ ଧନଜୀବନ ନାଶ କରୁଥିବା ସନ୍ତ୍ରାସବାଦୀଙ୍କ ବିରୋଧରେ ଅଲୌକିକ ଶକ୍ତି କାହିଁକି ପ୍ରୟୋଗ କରୁ ନାହାନ୍ତି?"(୭)

ସ୍ତମ୍ଭକାର ଉକ୍ତ ସ୍ତମ୍ଭରେ ଏହିଭଳି ଉଦାହରଣ ଦେଇତଥାକଥିତ ସମାଜର ଲୋକମାନଙ୍କର ଚେତନାରେ ପରିବର୍ତ୍ତନ ଆଣିବାପାଇଁ ପ୍ରୟାସ

କରିବା ସହିତ ଏଭଳି ବାବାମାନଙ୍କୁ ଏବଂ ଭକ୍ତମାନଙ୍କୁ କଟାକ୍ଷ କହି ସେମାନଙ୍କର ଚତନାରେ ପରିବର୍ତ୍ତନ ଘଟାଇବା ପାଇଁ ଚେଷ୍ଟାକରିଛନ୍ତି ।

'ଧୋତି, କୁର୍ତ୍ତା ଓ ପାଇଜାମା' ସ୍ତମ୍ଭରେ ସ୍ତମ୍ଭକାରଙ୍କ ବ୍ୟଙ୍ଗାତ୍ମକ ଦୃଷ୍ଟିଭଙ୍ଗୀକୁ ବେଶ୍ ଲକ୍ଷ୍ୟ କରାଯାଇପାରେ । ସ୍ତମ୍ଭ ପ୍ରାରମ୍ଭରେ ସାହିତ୍ୟିକ ସ୍ୱାଧୀନତା ପରବର୍ତ୍ତୀ ନେତାଙ୍କ ଆଦର୍ଶ ସହିତ ତାର ପରବର୍ତ୍ତୀ ସମୟର ନେତାଙ୍କ ଆଦର୍ଶକୁ ତଉଲିବା ପାଇଁ ଚେଷ୍ଟା କରିଛନ୍ତି। ଯେଉଁଥିରେ ଦେଶର ମଙ୍ଗଳହେବ, ସେହି ଯୋଜନାରେ ନେତାମାନେ ନିଜର ଶକ୍ତି ଓ ସମୟକୁ ବିନିଯୋଗ କରୁଥିଲେ । କିନ୍ତୁ ସେମାନଙ୍କ ପରବର୍ତ୍ତୀ ନେତାମାନେ କ୍ଷମତା ଏବଂ ଅର୍ଥବଳରେ ସାଧାରଣ ଜନତାଙ୍କୁ ଶୋଷଣ କରିବାକୁ ଲାଗିଛନ୍ତି । ସରକାରୀ କର୍ମଚାରୀମାନେ ମଧ୍ୟ ବିଭିନ୍ନ ଦୁର୍ନୀତି ଯୁକ୍ତ କାର୍ଯ୍ୟରେ ଲିପ୍ତ ରହୁଛନ୍ତି । କିନ୍ତୁ ସ୍ତମ୍ଭକାର ସ୍ତମ୍ଭର ଶେଷରେ ନେତାମାନଙ୍କୁ ବ୍ୟଙ୍ଗକରି ଉଲ୍ଲେଖ କରିଛନ୍ତି ଯେ - "ସରକାର, ସର୍ବସାଧାରଣ ଓ ଅଫିସରମାନଙ୍କର ଆଭିମୁଖ୍ୟ ଆସ୍ତେ ଆସ୍ତେ ବଦଳିବ, ଗଣତନ୍ତ୍ରର ଅଗ୍ରଗତି ସାଙ୍ଗେ ଏହା ନିଶ୍ଚୟ ହେବ । କିନ୍ତୁ ନେତାମାନେ 'ଆଲୋସଖୀ ଆପଣା ମହତ ଆପେରଖି' ନୀତିବାଣୀକୁ ମାନନ୍ତୁ । ଅପଯଶଠାରୁ ବଡଦଣ୍ଡ ନାହିଁ । "ଅପଯଶୋ ଯଦ୍ୟସ୍ତି କିଂ ମୃତ୍ୟୁନାଂ?"(୮)

'ବଢ଼ାଇଦେଲେ ପୟର' ସ୍ତମ୍ଭରେ ସ୍ତମ୍ଭକାର ସରକାରୀ କର୍ମଚାରୀମାନଙ୍କୁ ବ୍ୟଙ୍ଗ କରିଛନ୍ତି । ସ୍ତମ୍ଭର ଆରମ୍ଭରେ କୈବର୍ତ୍ତଟିଏ କିପରି ରାମଚନ୍ଦ୍ରଙ୍କ ପାଦ ଧୋଇଦେବାକୁ ସମର୍ଥ ହୋଇଥିଲା ତାହାକୁ ଉପସ୍ଥାପନ କରିଛନ୍ତି । ସେଥିଲା ଭକ୍ତ ଏବଂ ଭଗବାନଙ୍କର ସଂପର୍କ। କୁହାଯାଏ କି 'ଆତ୍ମସମର୍ପଣ' ହେଉଛି ନବଧା ଭକ୍ତି ମଧ୍ୟରୁ ଶ୍ରେଷ୍ଠ ଭକ୍ତି । କିନ୍ତୁ ସାଂପ୍ରତିକ ସମୟରେ ସରକାରୀ କର୍ମଚାରୀମାନେ ଏହାକୁ ଗ୍ରହଣ କରି ନେଇଛନ୍ତି । ସେମାନେ ଭଗବାନଙ୍କ ନିକଟରେ ଆତ୍ମସମର୍ପଣ କରୁନାହାନ୍ତି ବରଂ ଉଚ୍ଚପଦସ୍ଥ ଅଫିସର ପାଖରେ ନିଜମାନ ଓ ଆତ୍ମସମ୍ମାନକୁ ବଳି ଦେଉଛନ୍ତି । ପ୍ରଶଂସା ଟିକିଏ ପାଇବା ପାଇଁ ସେମାନଙ୍କର ଜୋତା ମଧ୍ୟ ସଫାକରିଦେଉଛନ୍ତି । ଏହି କାମକୁ ନିଜର ସୌଭାଗ୍ୟ ବୋଲି ଭାବି ନେଉଛନ୍ତି । ଲୋକମାନଙ୍କୁ ବେଖାତିରି କରୁଥିବା ସମୟରେ ଏହିଭଳି କର୍ମଚାରୀ ଉଚ୍ଚପଦସ୍ଥ କର୍ମଚାରୀହାତରେ ନିଜର ଆତ୍ମସମ୍ମାନକୁ ଟେକି ଦେଉଛନ୍ତି । ଏହି ସରକାରୀ କର୍ମଚାରୀମାନେ ଉପଲବ୍ଧି କରିବା ଦରକାର ଯେ ସେମାନେ ସର୍ବସାଧାରଣ ଓ ଆଇନର ଭୃତ୍ୟ । ଲୋକମାନଙ୍କୁ ଉପଯୁକ୍ତ ସମ୍ମାନ ଦିଅନ୍ତୁ ଏବଂ ନିଜ ଆତ୍ମସମ୍ମାନକୁ ଅନ୍ୟ ପାଖରେ ବିକ୍ରି ନକରନ୍ତୁ । ସ୍ତମ୍ଭକାର ଏହି ସ୍ତମ୍ଭ ଶେଷ କରିବାକୁ ଯାଇ ଉଲ୍ଲେଖ କରିଚନନ୍ତି- "ଗୋଟିଏ ସ୍ଥାନରେ ହୀନ ସ୍ତାବକ ଅନ୍ୟସ୍ଥାନରେ ଅହଂକାର ପ୍ରଦର୍ଶନ କରୁଛନ୍ତି । ଜଣକର ପାଦଧୋଇ ଅନ୍ୟମାନଙ୍କ ଆଗରେ ପାଦ ବଢ଼େଇ ଦେଉଛନ୍ତି । ବନ୍ଦ କରିବା ଦାୟିତ୍ୱ ସେମାନଙ୍କ ହାତରେ ।"(୯)

'ରାଜନୀତିରେ ଶାଳୀନତା' ସ୍ତମ୍ଭରେ ସ୍ତମ୍ଭକାର ଜନସାଧାରଣଙ୍କୁ ବ୍ୟଙ୍ଗ କରିବା ସହିତ ରାଜୀନତିଜ୍ଞ ନେତାମାନଙ୍କୁ ମଧ୍ୟ ତାସଲ୍ୟ କରିଛନ୍ତି । ଯେଉଁ ନେତାମାନେ ହତ୍ୟା, ଶୋଷଣ, ଦୁର୍ନୀତି ଇତ୍ୟାଦିରେ ଲିପ୍ତ ରହୁଛନ୍ତି ସେମାନଙ୍କୁ ଶାସନ ଗାଦିରେ ପୁନର୍ବାର ବସିବାର ସୁଯୋଗ ଦିଆଯବା ଉଚିତ ନୁହେଁ । କିନ୍ତୁ ଆମର ଜନସାଧାରଣମାନେ ତାଙ୍କୁ ହିଁ ଭୋଟ ଦେଇ ଜୟଯୁକ୍ତ କରାଇଥାଆନ୍ତି ଏବଂ କ୍ଷମତାର ଅପବ୍ୟବହାର କରିବାକୁ ସୁଯୋଗ ମଧ୍ୟ ପ୍ରଦାନ କରିଥାନ୍ତି । ସ୍ତମ୍ଭକାରୀ ସେମାନଙ୍କୁ ବ୍ୟଙ୍ଗକରି ଉଲ୍ଲେଖ କରିଛନ୍ତି - "ନେତାମାନଙ୍କ ଏ ଆଚରଣରେ ସର୍ବସାଧାରଣ କ୍ଷୁବ୍ଧ କିମ୍ବା ବିଚଳିତ ହେବା କଥା ; କିନ୍ତୁ ଦୁଃଖର କଥା ଯେ ଏଇମାନଙ୍କୁ ଲୋକମାନେ ପୁଣି ଭୋଟ ଦେଇ ନିର୍ବାଚିତ କରୁଛନ୍ତି । ରାଜ୍ୟର ସ୍ୱାର୍ଥ ଅପେକ୍ଷା ବ୍ୟକ୍ତିଗତ ସ୍ୱାର୍ଥକୁ ପ୍ରାଧାନ୍ୟ ଦିଆଯାଉଛି ।"(୧୦) ନେତାମାନଙ୍କୁ ମଧ୍ୟ ସଚେତନ କରାଇ ଦେବାକୁ ଯାଇ ସ୍ତମ୍ଭକାର ଉପସଂହାର ଲେଖିଛନ୍ତି - "ଶାସକଙ୍କ ଆଚରଣ ସର୍ବସାଧାରଣଙ୍କୁ ପ୍ରଭାବିତ କରିବା ସ୍ୱାଭାବିକ । ସେମାନେ ନିଜକୁ ହାସ୍ୟାସ୍ପଦ ନକରି ଅନ୍ୟମାନଙ୍କର ଆଦର୍ଶ ହୁଅନ୍ତୁ ।"(୧୧)

ସ୍ତମ୍ଭ ସାହିତ୍ୟରେ ବ୍ୟଙ୍ଗ ରଚନା ଶ୍ରୀଯୁକ୍ତ ମିଶ୍ରଙ୍କ ସ୍ତମ୍ଭସାହିତ୍ୟ ଏକ ନୂତନ ଅସ୍ବାଦ । ସାଂପ୍ରତିକ ସମାଜର ଦୁର୍ନୀତି, ରାଜନୀତି, ଭ୍ରଷ୍ଟାଚାର, ଭଣ୍ଡାମି, ଶାସନବ୍ୟବସ୍ଥାକୁ ବ୍ୟାଙ୍ଗ ସାହିତ୍ର ମାଧ୍ୟମରେ ବିଶ୍ଳେଷିତ କରିଛନ୍ତି । ତାଙ୍କର 'ମାତୃ ଗର୍ଭରୁ ଶ୍ମଶାନ ପର୍ଯ୍ୟନ୍ତ' ଓ 'ତୀର୍ଯ୍ୟକଦୃଷ୍ଟି' ସଂକଳନସ୍ଥ ଅନେକ ସ୍ତମ୍ଭରେ ବ୍ୟଙ୍ଗଚିତ୍ର ଚିତ୍ରିତ ହୋଇଅଛି । ଏହିସବୁ ସାହିତ୍ୟକୁ ଆଲୋଚନା କଲାବେଳେ ଶ୍ରୀଯୁକ୍ତ ମିଶ୍ରଙ୍କ ସ୍ତମ୍ଭର ଭାଷା ଅତ୍ୟନ୍ତ ତୀକ୍ଷ୍ଣ ଓ ମାର୍ଜିତ ଢ଼ଙ୍ଗରେ ପରିପ୍ରକାଶ ଘଟିଛି । ସମାଜ ସଂସ୍କାର କ୍ଷେତ୍ରରେ ତାଙ୍କଦ୍ୱାରା ଲିଖିତ ସ୍ତମ୍ଭ ସାହିତ୍ୟ ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ ମନେହୁଏ । ଏ ଦୃଷ୍ଟିରୁ ତାଙ୍କ ଦ୍ୱାରା ସୃଷ୍ଟ ସ୍ତମ୍ଭ ଗୁଡିକୁ ଆଲୋଚନା କରାଯାଇପାରେ ।

ଶ୍ରୀଯୁକ୍ତ ମିଶ୍ରଙ୍କ ବ୍ୟଙ୍ଗାତ୍ମକ ସ୍ତମ୍ଭ ରଚନାଗୁଡିକ ହେଲା "ଭେଳିକିଭକୁଆ, ମୁନୀନାଂ ଚ ମତିଭ୍ରମ, ଭାଷଣ ଓ ଭାଷୋଡି, ବଢ଼ାଇଦେଲେ ପୟର , ଶ୍ରୀକୃଷ୍ଣ ମହାପାତ୍ର ଇତ୍ୟାଦି । ଏହା ତାଙ୍କର ପ୍ରଥମ ପର୍ଯ୍ୟାୟର ବ୍ୟଙ୍ଗାତ୍ମକ ରଚନା, ଯାହା 'ତୀର୍ଯ୍ୟକ ଦୃଷ୍ଟି' ସଂକଳନରେ ସଂକଳିତ ହୋଇ ମର୍ଯ୍ୟାଦାଲାଭ କରିଅଛି । ଏହି ବ୍ୟଙ୍ଗସାହିତ୍ୟକୁ ଆଲୋଚନା କରାଯାଇଛି ।

'ଭେଳିକି ଭକୁଆ' ଏହି ସ୍ତମ୍ଭସାହିତ୍ୟର ରାଜନୈତିକ ବ୍ୟଙ୍ଗର ଚିତ୍ର ସୁସ୍ପଷ୍ଟ ବାରିହୋଇ ପଡେ । ସାଂପ୍ରତିକ ସମୟର ନେତା ମନ୍ତ୍ରୀମାନେ କିପରି ନିଜର କୁବୁଦ୍ଧିବଳରେ ସମାଜର ସାଧାରଣ ଜନତାକୁ ଭକୁଆ ବନାନ୍ତି ତା'ର ଚିତ୍ର ସ୍ପଷ୍ଟ । ନିଜର ପାରଦର୍ଶୀ ଭାଷଣ ଓ ବାକ୍ପଟୁତା ବଳରେ ନେତା ଓ ମନ୍ତ୍ରୀମାନେ ଜନତାଙ୍କୁ ଭକୁଆ ବନେଇ ଚିରଦିନପାଇଁ ଗାଦିମାଡି ଦେଶ ଶାସନ କରନ୍ତି ତାର ଚିତ୍ର ବର୍ଣ୍ଣିତ । "ସଭା, ସମିତି, ଶୋଭାଯାତ୍ରା, ସତ୍ୟାଗ୍ରହ, ଅନଶନ, ବରଖାସ୍ତ, ସବୁଥିରେ ଏମାନେ ପଶିଯାଆନ୍ତି , ତଥାକଥିତ, ଅଭିଭାବକଙ୍କ ଇଙ୍ଗିତରେ । ଦରକାର ପଡିଲେ ଏଇମାନେ ଆଇନ ଭାଙ୍ଗିବେ, ଦଣ୍ଡଭୋଗିବେ, ଯେକୌଣସି ଗଣ୍ଡଗୋଳ ଦେଖାନ୍ତୁ ଧରାହୋଇଥିବା ଲୋକମାନଙ୍କ ମଧ୍ୟରୁ ଭେଳିକି ଦେଖାଇବା ବାଲାଙ୍କ ସଂଖ୍ୟା ବହୁତ କମ୍ ଓ ଭକୁଆଙ୍କ ସଂଖ୍ୟା ବହୁତ ବେଶୀ ।" xxxx "ଅଳ୍ପ ପରିଶ୍ରମରେ ବହୁତ ଅର୍ଥ ଉପାର୍ଜନ, ଅନ୍ୟର ନାମ ନେଇ ସମାଜରେ ଉଚ୍ଚସ୍ଥାନ ଅଧିକାର କରିବାର ଲାଳସା ବେଳେ ବେଳେ ଆମର ବିବେକକୁ କ୍ଷୟକରେ । ଫଳରେ ଭେଳିକି ଦେଖାଉଥିବା ଲୋକ ହୁଅନ୍ତି ଆଦର୍ଶ ପୁରୁଷ ।"

'ମୁନିନାଞ୍ଚ ମତିଭ୍ରମ' ଏହି ସ୍ତମ୍ଭରେ ନୀତିବାକ୍ୟମାନଙ୍କୁ ମାନି ଚାଲୁଥିବା ସୁସ୍ଥ ପରଂପରାକୁ ଆମେ ଅପସଂସ୍କୃତି କହି ଭୁଲିଯାଉଛୁ। ଶହଶହ ହଜାର ହଜାର ବର୍ଷ ତଳେ ସେତେବେଳର ସାମାଜିକ ଅବସ୍ଥା ଓ ଚିନ୍ତାଧାରାକୁ ନେଇ ରଚିତ ହୋଇଥିବା ଅଧିକାଂଶ ନୀତିବାକ୍ୟକୁ ଆମେ ଗ୍ରହଣ କରିବାକୁ ଆଗ୍ରହ ପ୍ରକାଶ କରୁନାହୁଁ । ଯୁକ୍ତିତର୍କ ମାଧ୍ୟମରେ ଆମେ କହିବାକୁ ଚାହୁଁଯେ ମୁନି, ଋଷି ଓ ଲେଖକ ମାନେ ଯେଉଁ ନୀତିବାକ୍ୟ ଛାଡିଯାଇଛନ୍ତି ତାହା କ'ଣ ନିରିକ୍ଷଣ କରିବା ଉଚିତ୍ ନୁହେଁକି? ଯଦି ସଂବିଧାନ ସଂଶୋଧନ ହୋଇପାରୁଛି, ନୀତିବାକ୍ୟର କାହିଁକି ନହେବ? ତା ଛଡା ମୁନୀନାଞ୍ଚ ମତିଭ୍ରମ ବୋଲି ପ୍ରବାଦ ମଧ୍ୟ ଅଛି । ତଥାକଥିତ ସମାଜ ବ୍ୟବସ୍ଥାର ନୀତିବାକ୍ୟ ଓ ଆଦର୍ଶକୁ ସାଂପ୍ରତିକ ସମୟରେ ଗ୍ରହଣ କରାଯାଉ ନାହିଁ । ଶ୍ରୀଯୁକ୍ତ ମିଶ୍ର ଏହି ଲେଖାରେ ତାହାକୁ ବ୍ୟଙ୍ଗାତ୍ମକ ଢ଼ଙ୍ଗରେ ଏଠାରେ ଉପସ୍ଥାପନ କରିଛନ୍ତି । ଆମ ସମାଜ ବ୍ୟବସ୍ଥାରେ, ପୁରାଣରେ ଥବବା ସବୁ ଲୋକକଥା ଓ ନୀତିବାକ୍ୟ କିପରି ତାସଲ୍ୟ କରି ବ୍ୟବହାର କରାଯାଉଛି ତାହାନ ନିମ୍ନରେ ଆଲୋଚନା କରାଗଲା । "ତୁ ନାଥ ପରମ ଦୟାଳୁ, ଦୁଷ୍ଟ ନିବାରି ସନ୍ଥ ପାଳୁ ।" ଜଗନ୍ନାଥ ଦାସ ଭାଗବତରେ ଏହି ପଦଟି ନୀତିବାକ୍ୟ ଭାବେ ଗ୍ରହଣ କରାଯାଇଛି । ମାତ୍ର ସାଂପ୍ରତିକ ସମୟରେ ନାଥ ଶବ୍ଦ କୁ ଭୟାଳୁ ଓ ଦୁଷ୍ଟପାଳକ ଭାବେ ଗ୍ରହଣ କରି ତୁନାଥ ପରମଭୟାଳୁ , ସନ୍ଥ ଉପକ୍ଷି ଦୁଷ୍ଟପାଳୁ"( ୧୨) ବୋଲି କୁହାଯାଉଛି ।

ପୁଣି - "ଦଣ୍ଡିବା ଶକ୍ତି ଯାର ଥାଇ, ସେ ପୁଣି କ୍ଷମା ଆଚରଇ ।" ମାଛ ଖାଇବ ଇଲିସ, ଚାକିରି କରିବ ପୁଲିସ୍, ମାଗୁର୍ ମାଛର ମାଛର ଝୋଲ୍, ବେଟା ହରି ହରି ବୋଲ୍।" ରୂପେ ଗ୍ରହଣ କରାଯାଇଛି । ସେହିପରି ସଂସ୍କୃତରେ "ମତ୍ସ୍ୟାନାଂ ଭୁକୁଟୋ ରାଜା, ଇଲିଶି ପଟ୍ଟମହିଷୀ"- ମାଛମାନଙ୍କ ମଧ୍ୟରେ 'ଭେକ୍ଟୀ ହଉଛି ରାଜା ବା ଶ୍ରେଷ୍ଟ, ସେହିପରି ଚାକିରି କ୍ଷେତ୍ରରେ ପୋଲିସ୍ ଶ୍ରେଷ୍ଟ ଇତ୍ୟାଦି ବହୁ ନୀତିବାକ୍ୟ ବା ଢ଼ଗଢ଼ମାଳୀର ପ୍ରୟୋଗରି ତାହାକୁ କିପରି କୁତ୍ସିତ କଦାକାର କରାଯାଇଛି ତାହାର ଚିତ୍ର ପ୍ରଦାନ କରିଛନ୍ତି । ଉପରୋକ୍ତ ନିତିବାକ୍ୟମାନଙ୍କର ତତ୍ତ୍ୱକୁ ନବୁଝି ବ୍ୟାଖ୍ୟା କରିବା ଓ ସମାଜରେ ତାକୁ ଗ୍ରହଣ କରିବାକୁ ଶୀଯୁକ୍ତ ମିଶ୍ର 'ମୁନିନାଞ୍ଚ ମତିଭ୍ରମ' ସ୍ତମ୍ଭରେ ଏହାକୁ କଡାସ୍ୱରରେ ବ୍ୟଙ୍ଗ ଓ ତାସଲ୍ୟ କରିଛନ୍ତି ।

'ଭାଷଣ ଓ ଭାଷୋଡ଼ି' ସାଂପ୍ରତିକ ସମୟରେ ଯେଉଁଠାରେ ସଭାସମିତି ଚାଲୁଛି ବା ଭାଷଣ ବା ବକ୍ତବ୍ୟ ପ୍ରଦାନ କରାଯାଉଛି ସେସ୍ଥାନରେ ଶ୍ରୋତାଙ୍କ ସଂଖ୍ୟା କମ୍ । ଅବସ୍ଥାରେ ବାଧହୋଇ ମେଲୋଡିର ଆଶ୍ରୟ ନେବାକୁ ପଡେ, ଏପରିକି ସାହିତ୍ୟ ସଭାରେ ମଧ୍ୟ "ତେଣୁ ସଭା ଶେଷରେ ଯେଉଁ ସାଂସ୍କୃତିକ କାର୍ଯ୍ୟକ୍ରମ ଆୟୋଜିତ ହୋଇଥାଏ ତାହାକୁ ଲେଖକ ଏଠାରେ 'ଭାଷୋଡି' ବୋଲି ବ୍ୟଙ୍ଗ୍ୟମ୍ତାକ ଶୈଳୀରେ ଉପସ୍ଥାପିତ କରିଛନ୍ତି । ଅର୍ଥାତ୍ ଭାଷଣ+ମେଲୋଡି, ଭାଷୋଡି । ତେଣୁ ଭାଷୋଡି ହେଲା ମେଲୋଡି (ଯାତ୍ରା, ଦାସକାଠିଆ, ନାଚ ବା ସିନେମା) ର ବାହୁଛାୟା ତଳେ ଭାଷଣର ପ୍ରଗତି ।

"ଆମ ଦେଶର ଶିକ୍ଷିତ ଲୋକସଂଖ୍ୟାବେଶୀ ନୁହେଁ ଏବଂ ଦୈନନ୍ଦିନ ପଢ଼ିବାଅଭ୍ୟାସଥିବା ଲୋକଙ୍କ ସଂଖ୍ୟା ଆହୁରି କମ୍ । ପାଶ୍ଚାତ୍ୟ ଦେଶର ସମ୍ବାଦପତ୍ର ମାଧ୍ୟମରେ ବାର୍ତ୍ତା କୋଟିକୋଟି ଲୋକଙ୍କ ପାଖରେ ପହଁଚିପାରେ । ତେଣୁ ସାଂସ୍କୃତିକ ସଂକେତ ପହଞ୍ଚôଚେବ କିପରି ଆମଲୋକଙ୍କ ପାଖରେ? ଭାଷଣ ହେଉଛି ଏହାର ଉପଯୁକ୍ତ ପନ୍ଥା, କିନ୍ତୁ ଆମ ଦେଶର ଲୋକମାନେ ଭାଷଣ ପ୍ରତି ବିମୁଖ । ଭାଷଣ ଶୁଣିବାକୁ ହେଲେ ସାହିତ୍ୟ ସଭାରେ ଉପସ୍ଥିତ ରହିବା ନିତ୍ୟାନ୍ତ ଆବଶ୍ୟକ, ଉପସ୍ଥିତ ରହିବାକୁ ହେଲେ ସଭାକୁ ଆକର୍ଷଣୀୟକରିବାକୁ ହେଲେ 'ଭାଷୋଡି'ର ଆଶ୍ରୟ ନେବାକୁ ପଡିବ ।"(୧୩) ଏହି ଲେଖାରେ ଶ୍ରୀଯୁକ୍ତ ମିଶ୍ର ସୁନ୍ଦରଭାବରେ ସାହିତ୍ୟପ୍ରତିଥିବା ମାନସିକତା ଓ ତାର ପ୍ରତିଫଳନକୁ ତୀବ୍ର ସମାଲୋଚନା ଓ ବ୍ୟଙ୍ଗ କରିଛନ୍ତି ।

'ଶ୍ରୀକୃଷ୍ଣ ମହାପାତ୍ରେ' ଅନ୍ୟଏକ ବ୍ୟଙ୍ଗାତ୍ମକ ରଚନା । ତେଣୁ ଶ୍ରୀଯୁକ୍ତ ମିଶ୍ରଙ୍କ ଭାଷାରେ ଶ୍ରୀକୃଷ୍ଣ ମହାପାତ୍ରେଙ୍କୁ ଅର୍ଜନୁଜଳକା - ଏଇ ଯୋଡିକେବକ ମହାଭାରତରେନ ଥିଲେ । ସବୁଦିନେ ସବୁକାଳେ । ସବୁସ୍ଥାନରେ ଥାନ୍ତି, ଚଉଦ ଭୁବନର ଅଧିକାରୀ ଓ ସକଳ ଶକ୍ତିର ଆଧାର ।"(୧୪) ମହାଭାରତରେ ଶ୍ରୀକୃଷ୍ଣ ଓ ଅର୍ଜୁନ ଖାଲି ଦ୍ୱାପରରେ ନୁହେଁ କଳିରେ ମଧ୍ୟ ତାଙ୍କର ଛାୟାରେ ମହାପାତ୍ରେମାନଙ୍କ ଇଙ୍ଗିତରେ ଗାଁ ଲୋକଙ୍କ ଆର୍ବିଭାବ । ତେଣୁ ଶ୍ରୀଯୁକ୍ତ ମିଶ୍ରଙ୍କ ଭାଷାରେ - ଗାଁ ଗଣ୍ଡାମାନଙ୍କରେ ଓ ସହରମାନଙ୍କରେ ଶ୍ରୀକୃଷ୍ଣମାନେ ଆଗେଇ ଚାଲନ୍ତି ପ୍ରଗତି ପଥରେ ସାଙ୍ଗରେ ଗୁଡାଏ ଅର୍ଜୁନଙ୍କୁ ଧରି ଶିକ୍ଷା, ବ୍ୟବସାୟ, ରାଜନୀତି, ବା ଶାସନ ଯେ କୌଣସି କ୍ଷେତ୍ରରେ ଶ୍ରୀକୃଷ୍ଣ ହେବାକୁ ହେଲେ ଏକ କିମ୍ବା ଏକାଧିକ ଅର୍ଜୁନ ଦରକାର।

ସାଂପ୍ରତିକ କାଳର ମହାପାତ୍ରଙ୍କ ଆର୍ବିଭାବ ଓ ତାଙ୍କ ସହକର୍ମୀଙ୍କୁ ଇଙ୍ଗିତକରି ବ୍ୟଙ୍ଗାତ୍ମକ ଢ଼ଙ୍ଗରେ ଏହାକୁ ରଚନା କରିଛନ୍ତି । ସାଂପ୍ରତିକ ସମାଜବ୍ୟବସ୍ଥାରେ 'ନେତା ଓ କର୍ମୀ'ଙ୍କୁ ଏହି ସ୍ତମ୍ଭରେ ପୌରାଣିକ କଥାବସ୍ତୁ ଆଧାରରେ ବ୍ୟଙ୍ଗକରିଛନ୍ତି। ସ୍ତମ୍ଭସାହିତ୍ୟ ରଚନାର ୨ୟଭାଗରେ ମାତୃଗର୍ଭରୁ ଶ୍ମଶାନ ପର୍ଯ୍ୟନ୍ତ ସଂକଳନରେ ନିଜଆଡୁ ଶୀର୍ଷକରେ କୁହନ୍ତି "ଏହା ନିଶ୍ଚିତ ଯେ ବିଂଶଶତାବ୍ଦୀର ଦ୍ୱିତୀୟ ଭାଗରେ ଓ ବର୍ତ୍ତମାନ ଶତାବ୍ଦୀରେ ଯେତେପରିମାଣରେ ଓ ଯେଉଁ ଗତିରେ ସାମାଜିକ, ଅର୍ଥନୈତିକ, ରାଜନୈତିକ ଓ ସାଂସ୍କୃତିକ ପରିବର୍ତ୍ତନ ହେଉଛି ତାହାର ଚିତ୍ର ସୁସ୍ପଷ୍ଟ । ଦୃଢ଼କଣ୍ଠରେ ସମାଜର ଶୋଷଣ, ଦୁର୍ନୀତି, ଅବକ୍ଷୟ, ରାଜନୈତିକଘଟଣା ଦୁର୍ଘଟଣାକୁ ବ୍ୟଙ୍ଗାତ୍ମକ ଢ଼ଙ୍ଗରେ ତାଙ୍କ ସ୍ତମ୍ଭ ସାହିତ୍ୟରେ ସ୍ଥାନଦେଇଛନ୍ତି । ତାଙ୍କ ବ୍ୟଙ୍ଗସାହିତ୍ୟ ଗୁଡିକ ମଧ୍ୟରେ ରହିଛି ସଂସ୍କାର ମନୋବୃତ୍ତି, ନୂତନ ଦିଗ୍ଦର୍ଶନର ଆହ୍ୱାନ । ଶ୍ରୀଯୁକ୍ତ ମିଶ୍ରଙ୍କ ଦ୍ୱାରା ସୃଷ୍ଟ ବ୍ୟଙ୍ଗାତ୍ମକ ରଚନା ଗୁଡିକ ହେଲା ଯଥା - କିସ ହେଲା ଦାସେ, ଧୋତିକୁର୍ତ୍ତାଓ ପାଇଜାମା, ବଢ଼ାଇଦେଲେ ପୟର, ରାଜନୀତିରେ ଶାଳିନତା, ଆଉ ନିହନି ଭୂତାନି , ବୈଦ୍ୟରାଜ ନମସ୍ତୁତେ, ରାୟବାହାଦୂର ମାନସିକତା, ସୋଭିମନ୍ୟୁ,ରଣେ ରତ ।

'ଅହନି ଉନି ଭୂତାନି' କ୍ଷମତାଲିପ୍ସୁ, ଦୁର୍ନୀତିଖୋର, ଲାଞ୍ଚୁଆ, ସଭ୍ୟସମାଜକୁ ତୀବ୍ର ସମାଲୋଚନା ଓ ଭର୍ତ୍ସନା କରିଛନ୍ତି ଏହି ସ୍ତମ୍ଭରେ । ସାଂପ୍ରତିକ କାଳରେ ସଭ୍ୟସମାଜ ଦୁର୍ନୀତିକୁ ବ୍ୟଙ୍ଗକରିଛନ୍ତି । ଶ୍ରୀଯୁକ୍ତ ମିଶ୍ର କୁହନ୍ତି - "ପ୍ରତିଦିନ ଆମେ ଖବର କାଗଜରେ ପଢ଼ୁ ଲାଞ୍ଚ ନେବା ଅବସ୍ଥାରେ କିଏ ଜଣେ ଗିରଫ ହେଲା କିମ୍ବା ଆୟ ବହିର୍ଭୂତ ସଂପତ୍ତି ରଖବବା ଅଭିଯୋଗରେ କୌଣସି ଜଣେ ସରକାରୀ କର୍ମଚାରୀଙ୍କ ଘର

ଖାନତଲାସ ହେଲା । ଏମାନଙ୍କ ମଧ୍ୟରୁ ଅନେକ ଜେଲ ଯାଉଛନ୍ତି ମହାଭାରତରେ ଯୁଧିଷ୍ଠିର ପକ୍ଷଙ୍କୁ ଉତ୍ତର ଦେଇଥିଲେ ଯେ ପ୍ରତିଦିନ ଅସଂଖ୍ୟଲୋକ  ଯମ ମନ୍ଦିର ଯାଉଥିବା ଜାଣିବା ସତ୍ତ୍ୱେ ବାକି ସମସ୍ତେ ସବୁଦିନ ପାଇଁ ବଞ୍ଚିବା ଚାହାଁନ୍ତି ତା'ଠାରୁ ଆଶ୍ଚର୍ଯ୍ୟ କ'ଣ  ହୋଇପାରେ? ସେହିପରି କୁହାଯାଇପାରେ, ପ୍ରତିଦିନ ଲାଞ୍ଚନେଇ ଧରାପଡୁଛନ୍ତି ବିଭିନ୍ନ ସ୍ତରର କର୍ମଚାରୀମାନେ । ତଥାପି ଦୁର୍ନୀତି ଚାଲିଛି ।"(୧୫) ତେଣୁ ସରକାରୀ ସ୍ତରରରେ ଆଇନଥିଲେସୁଦ୍ଧା ତାହାର ଠିକ୍ କାର୍ଯ୍ୟକାରୀ ମଧ୍ୟ କରାଯାଉନାହିଁ । ତେଣୁ ଶ୍ରୀଯୁକ୍ତ ମିଶ୍ର ବ୍ୟଙ୍ଗାତ୍ମକ ଢ଼ଙ୍ଗରେ 'ଅହନି ତାନି ଭୂତାନି' ସ୍ତମ୍ଭରେ କୁହନ୍ତି "ଓଡ଼ିଶାରେ ଆୟ ବର୍ହିଭୁତ ସଂପତ୍ତି ବ୍ୟାଯାପ୍ତି ପାଇଁ ଆଇନପ୍ରଣୟନ କରାଯାଇଛି; ମାତ୍ର ଏ ପର୍ଯ୍ୟନ୍ତ କାହାରି ସଂପତ୍ତି ବାଜ୍ୟାପ୍ତି ହୋଇନାହିଁ ।" ତେଣୁ କୁହାଯାଇଛି -

"ଅହନି ହନି ଭୂତାନି ଗଚ୍ଛନ୍ତି ଯମ ମନ୍ଦିରମ୍ ।
ଶେଣ ମହତ୍ୱଂ ମିଛନ୍ତି କିମାଶ୍ଚର୍ଯ୍ୟଂ ଅତଃ ପରଂ  ।"

ସାଂପ୍ରତିକ ସମୟରେ ଆମରାଜ୍ୟ ତଥା ଦେଶର ରୋଗୀସେବା ଓ ତା'ର ଦୁର୍ନୀତି କଥାକୁ ଏହି ସ୍ତମ୍ଭରେ ଉପସ୍ଥାପନା କରାଯାଇଛି। ଆମ ଦେଶର ସ୍ୱାସ୍ଥ୍ୟସେବା କିପରି ବିପର୍ଯ୍ୟସ୍ତ  ତା'ର ଚିତ୍ର ଏଠାରେ ଦେଖିବାକୁ ମିଳିବେ । ସରକାରୀ ଓ ବେସରକାରୀ ସ୍ଥରରେ ଡାକ୍ତରଙ୍କ ରୋଗୀସେବା ମାଧ୍ୟମରେ ଶୋଷଣର ଚିତ୍ରକୁ ଏହିଠାରେ ବର୍ଣ୍ଣନା କରାଯାଇଛି। ବୈଦ୍ୟରାଜ ନମସ୍ତୁତେ .... ସ୍ତମ୍ଭ ମାଧ୍ୟମରେ ରୋଗୀଶୋଷଣ, ଦୁର୍ନିତି ଓ ଅର୍ଥଆଦାୟକାରୀ ଡାକ୍ତରଙ୍କ ନଗ୍ନଚିତ୍ର ଦେଖିବାକୁ ମିଳେ । ଆମ ଦେଶର ସରକାରୀ ଡାକ୍ତର  ଓ ସ୍ୱାସ୍ଥସେବା ବିଷୟରେ କୁହନ୍ତି - "ସରକାରୀ ଡାକ୍ତରଖାନାକୁ ବେଶୀରୋଗୀ (ବିଶେଷତଃ ଗରିବ ଓ ନିମ୍ନମଧ୍ୟବିତ)ଆସନ୍ତି । କ୍ଷମତାଶୀଳଲୋକ ବି ଆସନ୍ତି । ହସ୍ପିଟାଲମାନଙ୍କରେ ବେଡ ତୁଳନାରେ ବହୁତ ବେଶୀରୋଗିଥାଆନ୍ତି । କେଉଁ ବେଡ୍ରେ ଶେଯ ନଥାଏ ତ କେଉଁଠି ଚଦର ନଥାଏ । ଔଷଧ ମିଳିଥାଏ ଆବଶ୍ୟକତା ଠାରୁ କମ୍  । ସେଥିରେ ପୁଣି ବାଟମାରଣା । ଅନେକ ସଚ୍ଚୋଟ ଓ ପରିଶ୍ରମୀ ଡାକ୍ତରଙ୍କ ପାଇଁ ହସ୍ପିଟାଲମାନ ଚାଲୁଛି ଏବଂ ରୋଗୀମାନେ ବହୁପରିମାଣରେ ଉପକୃତ ହେଉଛନ୍ତି । ଦୁର୍ଭାଗ୍ୟ ଏହିକି ଯେ ରୋଗୀ ଶୋଷଣ ଅଭିଯୋଗ ବହୁତ ହେଉଛି । ରୋଗୀଙ୍କୁ ଦଲାଲ ମାଧ୍ୟମରେ ଡରେଇ  ଡାକ୍ତଯାଉଥିବା କ୍ଲିନିକକୁ ପଠେଇବା, ଅପରେସନ୍ ପାଇଁ ପଇସା ମାଗିବା , ଆଉଟ୍ଡୋରରେ ଅଳ୍ପ କେତେକ ରୋଗୀକୁ ଦେଖି ବାକି ସମସ୍ତଙ୍କୁ ଘରକୁ ଡକାଇ ପଇସା ଆଦାୟ କରିବା, ଦରକାର ନହେଲେ ମଧ୍ୟ ବିଭିନ୍ନପରୀକ୍ଷା ନୀରିକ୍ଷା କରି ଲାବୋରଟରୀ ବାଲାଠାରୁ କମିଶନ ନେବା, ଔଷଧ କିଣାରେ କମିଶନ ନେବା, ତଳିଆ କର୍ମଚାରୀଙ୍କଠାରୁ ପଇସା ଆଦାୟ କରିବା ସାଙ୍ଗକୁ, ବଦଳିପାଇଁ ପଇସା ଦେବା, ଯାହାଙ୍କ ଠାରୁ ବିପଦ ଆଶଙ୍କା ଅଛି (ଯଥା - ସ୍ଥାନୀୟନେତା, ଉଚ୍ଚପଦସ୍ଥ ଅଧିକାରୀ, ଗଣମାଧ୍ୟମ ପ୍ରତିନିଧି ଓ ଭିଜିଲାନ୍ସ) ତୁଷ୍ଟ କରିବା ଇତ୍ୟାଦି ଅଭିଯୋଗହୁଏ ଏବଂ ଅନେକ ଅଭିଯୋଗ ଅମୂଳକ ନୁହେଁ ।"(୧୬)

ଆମ ଦେଶରେ ସ୍ୱାସ୍ଥ୍ୟ ସେବାର ବିପର୍ଯ୍ୟୟ ତାର ନିରାକରଣ । ସୁନ୍ଦରସ୍ୱାସ୍ଥ୍ୟ ପାଇଁ ଯତ୍ନବାନ ହେବା ଏହି ସ୍ତମ୍ଭରେ ଶ୍ରୀଯୁକ୍ତ ବର୍ଣ୍ଣନା କରିଛନ୍ତି । ଏହାଛଡା ସରକାରୀ ସ୍ତରରେ ହେଉଥିବା  ଦୁର୍ନୀତିକୁ ତୀବ୍ର ଭର୍ତ୍ସନା ଓ ବ୍ୟଙ୍ଗକରି ଏହି ସ୍ତମ୍ଭରେ ବେତ୍ରାଘାତ କରିଛନ୍ତି । ସାଂପ୍ରତିକ ସମୟରେ ଆମଦେଶରେ ୧୩୬ଗୋଟି ମେଡ଼ିକାଲ କଲେଜ ପ୍ରତିଷ୍ଠା କରାଗଲାଣି ଯାହା ସ୍ୱାଧୀନତା ସମୟରେ  ମାତ୍ର ଗୋଟିଏରେ ସୀମିତ ଥିଲା । ତଥାପି ମଧ୍ୟ ଆମଦେଶର ସ୍ୱାସ୍ଥ୍ୟ ସମସ୍ୟା ସମସ୍ୟାରେ ହିଁ ରହିଛି। ତା'ର କାରଣ କ'ଣ ଏହା କିପରି ନିରାକରଣ କରାଯାଇପାରିବ । ଏ ସବୁ ପୁଙ୍ଖାନୁପୁଙ୍ଖ ଆଲୋଚନା ଏହିସ୍ତମ୍ଭରେ ଦର୍ଶାଇ ଦିଆଯାଇଛି । ତେଣୁ ଶ୍ରୀଯୁକ୍ତ ମିଶ୍ରଙ୍କ ଭାଷାରେ "ସରକାର ତାଙ୍କର ଡାକ୍ତରଙ୍କ ଦରମା ବଢ଼ାନ୍ତୁ, ସେମାନଙ୍କ ପଦୋନ୍ନତି ଠିକ୍ ସମୟରେ କରାନ୍ତୁ । ସଚ୍ଚୋଟ ଓନିଷ୍ଠାପର ଡାକ୍ତରଙ୍କୁ ପ୍ରୋତ୍ସାହନ ଦିଅନ୍ତୁ । ଅର୍ଥନୈତିକ ବ୍ୟାପାରରେ ଲିପ୍ତ ଡାକ୍ତର (ସରକାରୀ ଓ ବେସରକାରୀ)ଙ୍କ ଲାଇସେନ୍ସ ରଦ କରିବା ପାଇଁ ମେଡ଼ିକାଲ କାଉନ୍ସିଲକୁ ବାଧକରନ୍ତୁ। ଗରିବିଲୋକଙ୍କୁ ସବ୍ସିଡ ଦିଅନ୍ତୁ । ସରକାରୀ ସ୍ତରରେ କମ୍ ମୂଲ୍ୟର ମେଡିସିନ୍ ପ୍ରଚଳନ କରାନ୍ତୁ । ଏହି ସବୁ ବିଷୟକୁ ଧ୍ୟାନ ଦେଲେ ବହୁମାତ୍ରାରେ ସ୍ୱାସ୍ଥ୍ୟସେବାରେ ସୁଧାର ଆସିପାରିବ ବୋଲି ଶ୍ରୀଯୁକ୍ତ ମିଶ୍ର ତାଙ୍କ ସ୍ତମ୍ଭରେ ଆଲୋଚନା କରିଛନ୍ତି । ଉକ୍ତସ୍ତମ୍ଭରେ ଡାକ୍ତରମାନଙ୍କୁ ବ୍ୟଙ୍ଗାତ୍ମକ ଶୈଳୀରେ କହିଛନ୍ତି, ଯଥା – 'ବୈଦ୍ୟରାଜ ନମୋସ୍ତୁତେ ଯମରାଜ ସହୋଦରଃ' । କ୍ଷମସ୍ତୁ ହରତି ପ୍ରାଣାନ୍ ବୈଦ୍ୟ ପ୍ରଣାନି ଧାନି ଚ' ପ୍ରଯୁଜ୍ୟ । ବାସ୍ତବିକ ଆମସ୍ୱାସ୍ଥ୍ୟଓ ତାର ସମସ୍ୟାକୁ ନେଇ ସୁନ୍ଦର  ସ୍ୱାସ୍ଥ୍ୟଧର୍ମୀ ସ୍ତମ୍ଭ ରଚନା କରି ଶ୍ରୀଯୁକ୍ତ ମିଶ୍ର ପାଠକୀୟ ଆଦୃତି ଲାଭ କରିଛନ୍ତି ।

'ରାୟବାହାଦୂର ମାନସିକତା' ଶ୍ରୀଯୁକ୍ତ ମିଶ୍ରଙ୍କ ଅନ୍ୟଏକ ବ୍ୟଙ୍ଗାତ୍ମକ ରଚନା । ସ୍ୱାଧୀନତା ପୂର୍ବବର୍ତ୍ତୀ ସମୟଠାରୁ ସାଂପ୍ରତିକ ସମୟ ପର୍ଯ୍ୟନ୍ତ ଉପାଧି ପାଇଁ ସମସ୍ତେ ପାଗଳ । ଉପାଧି ହିଁ ପ୍ରକୃତରେ ନିଜର ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିପାରେ ଏହା ହିଁ ପ୍ରତ୍ୟେକ ବ୍ୟକ୍ତିଙ୍କର ମାନସିକତା । ଏହି ମାନସିକତାକୁ ଦୂର କରିବା ପାଇଁ ଶ୍ରୀଯୁକ୍ତ ମିଶ୍ରଙ୍କ ଏହି ସ୍ତମ୍ଭର ପ୍ରୟାସ ।

"ପଦବୀ ଆବୋରିବା ଅପେକ୍ଷା ପରିତ୍ୟାଗରେ ଯେଉଁ ଦିନ ଆନନ୍ଦ ମିଳିବ ସେଇଦିନ ଠାରୁ ସମାଜରେ ବିଷମତା ଜନିତ ଈର୍ଷା ଦୂର ହୋଇଯିବ । କିନ୍ତୁ ଏହା ଏତେ ସହଜ ନୁହେଁ । ମାନସିକ ସ୍ତରରେ ଦେଶର ବହୁତଲୋକ ଏବେ ବି ମଧ୍ୟଯୁଗରେ ଅଛନ୍ତି । କିଏ କାହାଠାରୁ କେତେ ବଡ ଏ ପ୍ରଶ୍ନ ସାମାଜିକ ଓ ପ୍ରଶାସନିକ କ୍ଷେତ୍ରରେ ସଦା ଜୀବିତ ।"(୧୭) ଏହି ଉପାଧି ବା ପଦପଦବୀକୁ ତ୍ୟାଗ କରିବାର ମାନସିକତା ହିଁ ଦେଶରେ ସମାନତା ପ୍ରତିଷ୍ଠା କରିପାରିବ । ସମାଜରୁ ଉଚ୍ଚନୀଚ ମନୋଭାବ ଦୂରୀଭୂତ ହେବ, ତାହାହିଁ ଶ୍ରୀଯୁକ୍ତ ମିଶ୍ରଙ୍କ ବକ୍ତବ୍ୟ । 'ରାୟବାହାଦୂର ମାନସିକତା' ସ୍ତମ୍ଭ ମାଧ୍ୟମରେ ସମାଜକୁ ବଦଳାଇବାର ପ୍ରୟାସ ଦୃଷ୍ଟିଗୋଚର ହୁଏ । ବ୍ୟକ୍ତିର ମାନସିକତାର ପରିବର୍ତ୍ତନରେ ହିଁ ସମାଜ ଓ ଦେଶର ପରିବର୍ତ୍ତନ ହେବ ତାହା ହିଁ ଶ୍ରୀଯୁକ୍ତ ମିଶ୍ରଙ୍କ ଲକ୍ଷ୍ୟ।

ଶ୍ରୀଯୁକ୍ତ ମିଶ୍ରଙ୍କ ସାଟାୟାର ଧର୍ମୀ ବା ବ୍ୟଙ୍ଗାତ୍ମକ ରଚନା ବାସ୍ତବରେ ସମାଜପାଇଁ ଉପଯୋଗୀ ସାବ୍ୟସ୍ତ ହୋଇଛି। ବ୍ୟଙ୍ଗମାଧ୍ୟମରେ ସମାଜ ପରିବର୍ତ୍ତନର ସ୍ୱର ସୁନ୍ଦରଭାବେ ରୂପାୟିତ ହୋଇଛି ଏକ ଶୋଷଣ ମୁକ୍ତ ସମାଜଗଠନ କରିବାର ପ୍ରୟାସ ନେଇ ଶ୍ରୀଯୁକ୍ତ ମିଶ୍ର ରଚନା କରିଛନ୍ତି

ଅନକ ସ୍ତମ୍ଭ । ଜଣେ ସମାଜ ସୁଧାରକ କଥାକାର ଭାବରେ ଓଡ଼ିଆ ସ୍ତମ୍ଭ ସାହିତ୍ୟରେ ଜଣେ ଜସସ୍ୱୀ ସାଧକ । ସମାଜ ସୁଧାରିବାର ଲକ୍ଷ୍ୟନେଇ ଅନେକ ସ୍ତମ୍ଭ ରଚନା କରିଛନ୍ତି । ଯଥାର୍ଥରେ ବ୍ୟକ୍ତି ଓ ସମାଜକୁ ବ୍ୟଙ୍ଗକରି ସମାଜ ସଂସ୍କାର କରିବାକୁ ଶତତ ଚେଷ୍ଟାକରିଛନ୍ତି । ନିଜର ଶୃଙ୍ଖଳିତ ତାସଲ୍ୟ ଓ ସମାଲୋଚନା ମାଧମରେ ସମାଜସଂସ୍କାର ପ୍ରୟାସ ତାକୁ ସମସ୍ତ ସ୍ତମ୍ଭ ସାହିତ୍ୟରେ ଦୃଷ୍ଟିଗୋଚର ହୁଏ । ବାସ୍ତବିକ ଶ୍ରୀଯୁକ୍ତ ମିଶ୍ର ବ୍ୟଙ୍ଗସାହିତ୍ୟ ରଚନା ପରିପ୍ରେକ୍ଷୀରେ ଓଡ଼ିଆ ସାହିତ୍ୟରେ ଜଣେ ଅଗ୍ରଗାମୀ ସାଧକ ।

**ସହାୟକ ପ୍ରାନ୍ତଟୀକା** :

[୧] ଚାଟାର୍ଜୀ ମୃଣାଳ - ଓଡ଼ିଶାରେ ସାମ୍ବାଦିକତାର ଇତିହାସ-ତୃତୁଲି ପ୍ରେସ୍, ଆଣ୍ଡ ଅସ୍ୱେନ୍ ବାପୁଜିନଗର, ଭୁବନେଶ୍ୱର-୧ମ ସଂସ୍କରଣ-୨୦୧୫, ପୃ.-୨୫୯

[୨] ରାୟ ରାଧାନାଥ - ରାଧାନାଥ ଗ୍ରନ୍ଥାବଳୀ-ଦରକାର କାବ୍ୟ-ପୃ.-୩୦୭

[୩] ମିଶ୍ର ବିପିନ ବିହାରୀ - ତୀର୍ଯ୍ୟକଦୃଷ୍ଟି-ଓଡ଼ିଶା ବୁକ୍ଷ୍ଟୋର, ବିନୋଦ ବିହାରୀ, କଟକ-୭୫୩୦୦୨, ପ୍ରଥମପ୍ରକାଶନ-୧୮୯୨,ପୃ.-୫

[୪] ମିଶ୍ର ବିପିନ ବିହାରୀ, ତୀର୍ଯ୍ୟକ ଦୃଷ୍ଟି-ଓଡ଼ିଶା ବୁକ୍ଷ୍ଟୋର, ବିନୋଦ ବିହାରୀ,କଟକ-୭୫୩୦୦୨, ପ୍ରଥମପ୍ରକାଶନ-୧୮୯୨,ପୃ.-୫

[୫] ମିଶ୍ର, ବିପିନ ବିହାରୀ-ମାତୃଗର୍ଭରୁ ଶ୍ମଶାନ ପର୍ଯ୍ୟନ୍ତ-କିସ ହେଲା ଦାସେ, ପୃ.-୨୦

[୬] ମିଶ୍ର, ବିପିନ ବିହାରୀ-ମାତୃଗର୍ଭରୁ ଶ୍ମଶାନ ପର୍ଯ୍ୟନ୍ତ-କିସ ହେଲା ଦାସେ, ପୃ.-୨୦

[୭] ମିଶ୍ର, ବିପିନ ବିହାରୀ-ମାତୃଗର୍ଭରୁ ଶ୍ମଶାନ ପର୍ଯ୍ୟନ୍ତ-କିସ ହେଲା ଦାସେ, ପୃ.-୨୦-୨୧

[୮] ମିଶ୍ର, ବିପିନ ବିହାରୀ-ମାତୃଗର୍ଭରୁ ଶ୍ମଶାନ ପର୍ଯ୍ୟନ୍ତ-ଧୋତିକୁର୍ତ୍ତା ପାଇଜାମା, ପୃ.-୪୪

[୯] ମିଶ୍ର, ବିପିନ ବିହାରୀ-ମାତୃଗର୍ଭରୁ ଶ୍ମଶାନ ପର୍ଯ୍ୟନ୍ତ-ବଢ଼ାଇଲେ ପୟର, ପୃ.-୪୬

[୧୦] ମିଶ୍ର, ବିପିନ ବିହାରୀ-ମାତୃଗର୍ଭରୁ ଶ୍ମଶାନ ପର୍ଯ୍ୟନ୍ତ-ରାଜନୀତିରେ ଶାଳୀନତା, ପୃ.-୭୪

[୧୧] ମିଶ୍ର, ବିପିନ ବିହାରୀ-ମାତୃଗର୍ଭରୁ ଶ୍ମଶାନ ପର୍ଯ୍ୟନ୍ତ-ରାଜନୀତିରେ ଶାଳୀନତା, ପୃ.-୭୪

[୧୨] ମିଶ୍ର, ବିପିନ ବିହାରୀ-ତୀର୍ଯ୍ୟକ ଦୃଷ୍ଟି-ମୁନୀନାଞ୍ଚ ମତିଭ୍ରମ, ପୃ.-୪୦

[୧୩] ମିଶ୍ର, ବିପିନ ବିହାରୀ-ତୀର୍ଯ୍ୟକ ଦୃଷ୍ଟି-ଭାଷଣ ଓ ଭାଷୋଳି, ପୃ.-୭୧

[୧୪] ମିଶ୍ର, ବିପିନ ବିହାରୀ-ତୀର୍ଯ୍ୟକ ଦୃଷ୍ଟି-ଶ୍ରୀକୃଷ୍ଣ ମହାପାତ୍ର, ପୃ.-୧୧୯

[୧୫] ମିଶ୍ର, ବିପିନ ବିହାରୀ-ମାତୃଗର୍ଭରୁ ଶ୍ମଶାନ ପର୍ଯ୍ୟନ୍ତ-ଅହନି ହନି ଭୂତାନି, ପୃ.-୭୪

[୧୬] ମିଶ୍ର, ବିପିନ ବିହାରୀ-ମାତୃଗର୍ଭରୁ ଶ୍ମଶାନ ପର୍ଯ୍ୟନ୍ତ-ବୈଦ୍ୟରାଜ ନମସ୍ତୁତେ, ପୃ.-୧୫-୧୬

[୧୭] ମିଶ୍ର, ବିପିନ ବିହାରୀ-ମାତୃଗର୍ଭରୁ ଶ୍ମଶାନ ପର୍ଯ୍ୟନ୍ତ-ରାୟବାହାଦୂର ମାନସିକତା, ପୃ.-୧୩୧